# ଗାଠ ବୋଲି ।



ଶ୍ରୀ ଅର୍ଜୁନ ମହାରଣାଙ୍କ ଦ୍ୱାରା ସଂଗୃହୀତ
ଓ ପ୍ରଥମବାର ପ୍ରକାଶିତ ।

୮, ସେଣ୍ଟ ଜେମସସ୍କୋୟାର ବହୁବଜାର କଲକତା ।

Printed by M. L. Maharana.
UTKAL PRESS.
8, St. James Square, Calcutta.
1921.

ମୂଲ୍ୟ ୦ ୦/୩



# ଚାଟ ବୋଲି ।

## କମଳଲୋଚନ ।

କମଳଲୋଚନ ଶ୍ରୀହରି । କରେଣ ଶଙ୍ଖ ଚକ୍ରଧାରି ।।
ଖଗଆସନେ ଜଗପତି । ଖେଳନ୍ତି ଲକ୍ଷ୍ମୀ ସରସ୍ୱତୀ ।।
ଗରୁଡ଼ ଆସନେ ମୁରାରି । ଗୋପରେ ରଖିଲେ ବାଛୁରୀ
ଘନ କଠିନ କଳେବର । ଘଟେଣ ଶ୍ରୀମୁଖ ସୁନ୍ଦର ।।
ନନ୍ଦନନ୍ଦନ ଗୋପୀନାଥ । ନିସ୍ତରି ଯିବ ନରେ ଶନ୍ତ ।।
ଚନ୍ଦ୍ରମା ପ୍ରାୟେକ ବଦନ । ଚାହିଁଲେ ଛଣ୍ଡେ ଦୁଃଖମାନ
ଛତ୍ରି ଉତ୍ତମ ଶିରୋମଣି । ଛଟକେ ଆଣିଲେ ରୁକ୍ମିଣୀ ।।
ଜଗଜ୍ଜୀବନ ଦାଶରଥି । ଜାନକୀ ଦେବୀ ପ୍ରାଣପତି ।।
ଝୀନପଟଳି ଅଙ୍ଗେ ଶୋଭା । ଝଟକିବିଦ୍ୟୁ ପ୍ରାୟେ ଆଭା ।।
ନୀଳେନ୍ଦ୍ରିକଳେ ପଦ୍ମଆଖି । ନିସ୍ତରି ଯିବା ନରେ ଦେଖି
ଟେକିଲେ ଦୁବ କରେ ଦାରୁ । ଟାଣି ପଣରେ ଭାଙ୍ଗେ ମେରୁ
ଠଣ ସୁନ୍ଦର ଶିରୋମଣି । ଠିକେ କମଳା ଯା ଘରଣୀ ।।
ଡମ୍ବରୁଧର ଯାକୁ ସେବା । ଡରେ ଖେଳନ୍ତି ସର୍ବଦେବା ।।
ଢମ ଯେ କଲା ପାପେ କଂସ । ଢାଳେ ଅସୁର ଗଲା ନାଶ ।।
ଅନନ୍ତ ନାମେ ଅନ୍ତ ନାହିଁ । ଅଣ ଅକ୍ଷରେ ଯାର ଦେହୀ ।।
ତପନକୁଳେ ଅବତରି । ତାରିଲେ ଗଉତମ ନାରୀ ।।
ଥବିରପଣେ ମାୟାଗତି । ଥୟ ନ ଜାଣେ ବେଦପତି ।।

ଦରିଦ୍ର ଦାମୋଦର ମିଶ୍ର । ଦଣ୍ଡକେ ଦେଲେ କୋଟିଅର୍ଥ ॥
ଧରଣୀଧର ଶିରୋମଣି । ଧ୍ରୁବଙ୍କୁ ନିସ୍ତାରିଲେ ପୁଣି ॥
ନୃସିଂହ ମାଧବ ମୁରାରି । ନଖେଣ ହିରଣ୍ୟ ବିଦାରି ॥
ପରମାନନ୍ଦ ପଦ୍ମନାଭ । ପୂରି ରହିଛି ସର୍ବଜୀବ ॥
ଫୁଲାପଣକୁ ନୋହେ ସରି । ଫୁଲମାଳରେ ଦେହ ଭରି ॥
ବାଳକି ବଧ କଲ ହେଲେ । ବନ୍ଧ ବାନ୍ଧିଲ ସିନ୍ଧୁ ଜଳେ ॥
ଭାଙ୍ଗିଲ ରତ୍ନମୟ ପୁର । ଭ୍ରାନ୍ତି ଘୁଡ଼ିଲା ଦେବଙ୍କର ॥
ମାଇଲ ଅକ୍ଷୟ ରାବଣ । ମହିମା କେ କରେ ବଖାଣ ॥
ଯାଦବ ବଂଶେ ଜାତ ହୋଇ । ଜଗତ ଉଦ୍ଧାରିବା ପାଇଁ ॥
ରଖିଲ ଜଳରେ ଗଜକୁ । ରାଗେଣ ଛେଦିଲ ଗ୍ରାହାକୁ ॥
ଲାବଣ୍ୟ ମୂର୍ତ୍ତି ଲକ୍ଷ୍ମୀଧର । ଲୟ କରନ୍ତି ସୁର ନର ॥
ବଡ଼ିମା ପଣେ ବନ୍ଧୁଅଂଶ । ବ୍ରହ୍ମା ଶଙ୍କର ଯାର ଦାସ ॥
ଶ୍ରୀପତି ଶ୍ରୀକର ଶ୍ରୀଧର । ଶ୍ରୀୟାଦେବୀଙ୍କ ମନୋହର ॥
ସଂସାର ଭିତରେ ଉତ୍ତମ । ସାଧୁଙ୍କ ହିତରେ ଜନମ ॥
ଶ୍ୟାମସୁନ୍ଦର କଳେବର । ସକଳ ଦେବେ ପରିଶ୍ରର ॥
ହରି ବୋଇଲେ ହରେ ଦୁଃଖ । ହରି ଆନନ୍ଦ ମହାସୁଖ ॥
କ୍ଷମାସାଗର ପୀତବାସ । ଛଡ଼ିଲେ ବଳରାମ ଦାସ ॥୩୬॥

---

## ଦଶଅବତାର ।

ଆଦ୍ୟ ଅବତାରେ ହରି ମୀନରୂପ ଜଲେ ॥ ଲକ୍ଷେକ ଯୋଜନ ସିନ୍ଧୁ ବିଜୃମ୍ଭିଲ ହେଲେ । ଶଙ୍ଖାସୁର ବେଦଗ୍ରେର ଘୋଞ୍ଚ ଆଣି ମାରି । ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୧ ।
କୂର୍ମରୂପ ମହାକାୟ ଦେବେ ଅଗୋଚର । ପୃଥିବୀ ଧଇଲ ନାଥ ଛିରଣ ଆକାର । ସାତଦ୍ୱୀପ ସାତସିନ୍ଧୁ ଉଦ୍ଧରିଣ ଧରି । ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୨ ।

ବରହ ମୂରତି ସ୍ୱାମୀ ଅତିବଡ଼ ମାୟା । ସ୍ୱର୍ଗମର୍ତ୍ତ୍ୟ ପାତାଳ
ପୂରିଛି ଯାର କାୟା । ପାଦେମେରୁ ଗୋପ୍ୟ କରି ଦନ୍ତେ ପୃଥ୍ୱୀ
ଧରି । ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୩
ନରସିଂହ ନରକାୟ ସିଂହ ଯେ ବଦନ । କାଳାନଳ ଅନଳ
ପ୍ରଚଣ୍ଡ ବାହୁବଳ । କୋପେ ବାହୁ ବିସ୍ତାରିଣ ହିରଣ୍ୟ ବିଦାରି ।
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି ।୪। ସାମାନ୍ୟରେ
ଦ୍ୱିଜରୂପ ପ୍ରତ୍ୟକ୍ଷେ ବାମନ । ତିନିପାଦ ବଳୀଙ୍କ ମାଗିଲେ
ଭୂମିଦାନ । ଦାନ ଘେନି ବଳୀଙ୍କ ଗୃହିଲେ ତଳପୁରୀ ।
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବନରହରି । ୫ । ପର୍ଶୁ ଏକ
ଧରିଣ ଯେ ପର୍ଶୁରାମ ଥିଲେ । ଏକୋଇଶବାର ପୃଥ୍ୱୀ ନିକ୍ଷତ୍ରୀ
ସେ କଲେ । ପିତା ବୋଲେ ଅଲଙ୍ଘି ତ ମାତା ବଧ କରି ।
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୬ । ଦଶରଥ
ଘରେ ଯେ ଶ୍ରୀରାମ ହେଲେ ଜାତ । ସୀତା ଛଳେ ଦଶଶିର ପ୍ରାଣ
କଲେ ହତ । କଲେ ରାଜା ବିଭୀଷଣ ରାଣୀ ମନ୍ଦୋଦରୀ ।
ତୋଷେବର ଦ୍ୟନ୍ତୁ ସ୍ୱାମୀଦେବ ନରହରି ।୭। ନନ୍ଦଘରେ ରାମ
କୃଷ୍ଣ ଗୋପେ ଅବତରି । କଂସ କେଶୀ ଯାମଳା ଅନେକ
ଦୈତ୍ୟ ମାରି । ଷୋଳସସ୍ର ଗୋପକନ୍ୟା ରମଣ ସେ କରି ।
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୮ । ବୌଦ୍ଧ-
ରୂପେ ନୀଳଗିରି ମହୋଦଧି ତୀରେ । ଯୋଗଲୟ କରନ୍ତି
କଳ୍ପବୃକ୍ଷ ମୂଳେ । ଶ୍ରୀ ପୁରୁଷୋତ୍ତମ ଖେଳେ ଶଙ୍ଖ ଚକ୍ର ଧରି
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି । ୯ । କଳିଯୁଗ
ଅନ୍ତରେ କଳଙ୍କି ନାମ ଜାତ । ଘେନି ହସ୍ତେ ଘେନି ଖଣ୍ଡା
ନିବାରିବେ ଦୈତ୍ୟ । ସନ୍ତ ଜନ ପ୍ରତିପାଳି ଦୁଷ୍ଟ ଜନ ମାରି
ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି ।୧୦। ମଚ୍ଛ କଚ୍ଛ
ବରାହ ଯେ ନରସିଂହ ମୂର୍ତ୍ତି । ବାମନ ଯେ ପର୍ଶୁରାମ ଶ୍ରୀରାମ

ସ୍ୱରୂପୀ । ବଳରାମ ବୁଦ୍ଧଦେବ କଲ୍କୀରାମ କାୟେ । ଦଶ-
ଅବତାର ଶୁଣି ପାପ କର କ୍ଷୟେ । ୧୧ । ଦଶଅବତାର
ଯେବେ ନିତ୍ୟେହେଁ ପଢନ୍ତି । ଲକ୍ଷ କୋଟି ଗୋଦାନର ଫଳ
ଶ୍ରୁତି ପାନ୍ତି । ଏ ଭବସାଗରୁ ନାଥ ମୋତେ କର ପାରି ।
ତୋଷେ ବର ଦିଅନ୍ତୁ ସ୍ୱାମୀ ଦେବ ନରହରି । ୧୨ ।

---

## କଳା କଳେବର କହ୍ନାଇ ।

ରାଗ—ରାମକେରୀ ।

କଳା-କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ । କରନ୍ତି
ବିଜୟେ ମଥୁରା ଦାଣ୍ଡେ ଦେଖ ସଙ୍ଗାତ । ୧ । ଖସି ପଡୁଛି
କି ଆକାଶୁଁ କି ଏ ଗଙ୍ଗା ଯମୁନା । କ୍ଷୀର ସଙ୍ଗେ ପ୍ରାଣ
ଶୋଷିଲେ କାଣ୍ଡ ଗଲା ପୂତନା । ୨ । ଗହନ କାନନ ମଧ୍ୟରେ
ଘୋର ବରଷାକାଳ । ଗିରି ବାମକରେ ଧଇଲେ ନନ୍ଦ
ଯଶୋଦାବାଳ । ୩ । ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ
ଜାତି । ଘେନି ବତ୍ସାବୃନ୍ଦ ବାଳକେ ବନେ ବୁଲନ୍ତି ନିତି । ୪ ।
ଉଇଁ ଆସୁଛି କି ପୂର୍ଣ୍ଣିମାଶଶୀ ମଧୁସାଗରୁ । ଉଠ ମଧୁପୁର
ଯୁବତୀ ଖୋଲବା ଅଗରୁ । ୫ । ଚନ୍ଦନ ବେଶ ମୁଁ କରନ୍ତି
ମୋର ହେଉଛି ମନ । ଛତ୍ର କେ ଧରିବ ଯୁବତୀ ମୁହିଁ ଚନ୍ଦ୍ର-
ବଦନ । ୬ । ଛନକା ଦଣ୍ଡିଲା ଛାତିରେ ଜାଡ଼ି କୁଳ ଉଦେଷ୍ଟି ।
ଛାଡ଼ିବେ ଜୀବନ ଯଶୋଦା ଗୋପେ କୃଷ୍ଣ ନ ଦେଖି । ୭ । ଜହର
ଖଙ୍ଗତେ ମଥୁରା ଆସି ହେଲା ନିସ୍ତ । ଯୁବତୀ କୁଳକୁ
ଦଇବ କଲା ଏ ହତପାତ । ୮ । ଝଡ଼ିପଡୁଛି କି ଝୁଣ୍ଟିଆ ଝସ-
କେତନ ଘାତେ । ଝାଳ ବିନ୍ଦୁ ବିନ୍ଦୁ ଶ୍ରୀମୁଖୁଁ ବହୁଅଛି ନିରତେ
ନୟନ ଉପରେ ଭ୍ରୂଲତା କି ଏ କାମ କମାଣ । ନୁହନ୍ତି ଏ
ପୋଏ କାହାରି ସବୁ ଗୋପୀଙ୍କ ପ୍ରାଣ । ୧୦ । ଠୋପୀ ଠୋପୀ

ଗୋପୀ ଚନ୍ଦନ ମଣ୍ଡିଛନ୍ତି ଜ ସଜେ । ଟେକି ବାରେ ଗୃହାଁ
ମଥୁରା ବାଣ୍ଟେ ଗୋବିନ୍ଦ ବିଜେ । ୧୧ । ଠାବେ ଠାବେ
ଗୋଲ ଚହଲ ଶିଙ୍ଗା ବେଣୁ ବଇଁଶୀ । ଠିଆହୋଇ ଭକ୍ତଦାସ
ତା ବାଣ୍ଟେ ଦେଖନ୍ତି ଆସି । ୧୨ । ଡାକନ୍ତି ଏକଲୁ ଆରେକ
ଆସ ଜୀବଜୀବନ । ଡୋଲାରେ ଏ ରୂପ ଦେଖିବା ବିଜେ
ମଧୁସୂଦନ । ୧୩ । ଢଳ ଢଳ କୃଷ୍ଣ ନାଚନ୍ତି ଭଙ୍ଗୀ ଦେଖ ମିଳଣି
ଢାଳନ୍ତି ଜ ରୂପେ ଡୋଲାକୁ କେଉଁ ଛଟକେ ଆଣି । ୧୪ ।
ଅଳକାରେ ସରୁ କାଇଁଚ ମଣ୍ଡିଛନ୍ତି ଜ କରେ । ଅଣହେଲା
ଯାଉଥିବେ ଗୋ ନନ୍ଦ ଗଉଡ଼ ଘରେ ।୧୫। ତିଲକ ଉପରେ
କସ୍ତୁରୀ ଗୋରଚନା ରଞ୍ଜିଛି । ଚେରସ୍ଥଳ ଗୃହିଁ ଦେବାରୁ
ଚରଲାଇ ଦେଉଛି । ୧୬ । ଥକା ହୋଇ ଥୋକେ ରହିଲେ
ଥୋକେ ଗଲେ ଗୋଡ଼ାଇ । ଥିର ମଦନ ସଂଘାତରେ କାମ
ଦେଲା ଭୁଲାଇ । ୧୭ । ଦୁଃଖୀ ଲୋକଙ୍କର ସଞ୍ଚାଳ ସେତ
ଦରିଦ୍ର ଧନ । ଦଧି ଦୁଧସର ଖିଆ ଗୋ ଦେଣୁ ବଡ଼
ଲାବଣ୍ୟ ।୧୮। ଧରଣୀ ମଣ୍ଡିଲା ପରାଏ ହୋଇଛନ୍ତି ଜ ଉଭା
ଧଳା କଳା ବେନି ଭାଇ ଗୋ ଦୁହେଁ ଦୁହିଁଙ୍କ ଶୋଭା ।୧୯।
ନାସାବିନ୍ଧା ଅପ୍ରତିଆଣି ସେ ଗୋ ଯଶୋଦା ସୁତ । ନ କଲା
ଦଇବ ନରେନ୍ଦ୍ର ଘରେ ଏ ପୁଅ ଜାତ । ୨୦ । ପୁଅ ହୋଇ
ଏଡ଼େ ସୁନ୍ଦର ନାହିଁ କାହାର ଘରେ । ପାହିଲା ଜ ଯୋଗେ
ରଜନୀ ଆଜ ମଧୁନଗରେ । ୨୧ । ଫୁଲରେ ଏହାଙ୍କ ଶରଧା
ଫୁଲେ ଦିଶନ୍ତି ଚୋରା । ସ୍ଫୁରୁଛି ଜ ବାମ ନୟନ ମୋତେ
ଗୃହିଁବେ ପରା ।୨୨। ବୁଦ୍ଧିବଣା ହେଲା ଶୁଣିଣ ଅମୃତ ଜଣା
ବାଣୀ । ବସି କେତେକାଳ ଗଢ଼ିଲା ତାକୁ କେଉଁ ବିନ୍ଧାଣି ।୨୩
ଭକ୍ତବାକୁ ହେଲା ଭଜନମାଳା, କଲା ଏ ରୂପ । ଭକ୍ତବନ୍ଧ
ଭକ୍ତଦାସ ତା କ୍ଷୟ କରିବ ପାପ ।୨୪। ମନ୍ଦବୁଦ୍ଧି କଲେ ନନ୍ଦ

ଗୋ ସେତ ଅମୃ କରମ । ମିଛେ ନନ୍ଦପୁଅ ବୋଲନ୍ତି ମଥୁ-
ରାରେ ଜନମ । ୨୫ । ଯଦୁକୁଳ ଚନ୍ଦ୍ର ବୋଲିବା ସେ ଗୋ
ଯଦୁବିହାରୀ । ଜାତି ଯଉବନ ଜୀବନ ସବୁ ନେଲା ଆମ୍ଭରି ॥
ରାମକୃଷ୍ଣ ହେଲେ ଭାଇ ଗୋ ଦୁହେଁ ଦୁହିଙ୍କି ଚୋରା । ରଙ୍ଗେ
ନାଚ ଆସୁଅନ୍ତି ଗୋ ଯେହ୍ନେ ଗଗନେ ତାରା । ୨୭ । ଲାଜ
ଭୟ ତେଜି କରିବା କୃଷ୍ଣ ସଙ୍ଗେ ପୀରତି । ଲାଭ ହେଉଥିବ
ଆମ୍ଭର ହସୁଥିବା ଗୋ କିଛି ।୨୮। ବଳଣ ଦିଶେ କି ମଳଣ
ତାହୁ ଶ୍ରୀଭୁଜସ୍ଥଳ । ବିନ୍ଦୁଛି କି ଝୁମ୍ପକେତନ ମିଶି ହେଲା
ତରଳ ।୨୯। ଶ୍ରୀମନ୍ତ ବଢ଼ାଇ ଏ ପୂଅ ଲକ୍ଷ୍ମୀ ଏହାଙ୍କ ଦାସୀ ।
ଶ୍ରୀମୁଖ ଟି ପରା ଦିଶୁଛି ଜବା ପୂର୍ଣ୍ଣିମା ଶଶୀ ।୩୦। ସର ଲବଣୀ
ଗୋଟିକା ଯେ ଖାଇ ନନ୍ଦର ବହି । ସବୁ ଗୋପୀଙ୍କର ମନକୁ
ବଂଶୀସ୍ୱନେ ମୋହୁଛି ।୩୧। ସଧୀରେ ପବନ ବହଇ ସବୁ
କଟିମେଖଳା । ଶିବ ଡମ୍ବରୁ କି କୈଳାଶୁଁ ଶ୍ୟାମ ବଦନକଳା
ହେଲେ ହେବୁଁ ପଛେ କୁଳଟା ହାର କରିବୁ ଗଲେ । ହସୁ-
ଥିବୁ ତାଙ୍କ ସଙ୍ଗରେ ବସୁଥିବୁ ଗୋ କୋଳେ ।୩୩। ଛାଡ଼ି ଲଜ୍ଜା
ଭୟ ତା ରୂପ ଦରପଣେ ମାଜିବା । ଛାର କହେ ଭକ୍ତ ଦାସ
ତା ଧାପେ ରଜନୀ ଦିବା । ୩୪ ॥

---

## ଶ୍ରୀକୃଷ୍ଣଙ୍କୁ ମାତାଙ୍କ ଉକ୍ତି ।

କହନ୍ତି ମାଏ ହେ ଶ୍ରୀକୃଷ୍ଣ ଆଗେ । କଥା ଶୁଣ ବାବୁ ଅତି
ସରାଗେ । ୧ । ଖେଳୁଆଳ ବୁଦ୍ଧି ଛାଡ଼ରେ ବାବୁ । ଖଡ଼ି
ଛୁଇଁଲେ ତୁ ବିଦ୍ୟା ପଢ଼ିବୁ ।୨। ଗୁରୁଙ୍କ ଆଗେ ଓଳଗିବୁ ଯାଇଁ
ଗୋବିନ୍ଦ ସୁମରି ଲେଖିବୁ ଭୂଇଁ ।୩। ଘେନି ଖଡ଼ି ହସ୍ତେ ଶ୍ରୀୟା
ଲେଖିବୁ । ଘଣ୍ଟଣ ନେଇ କପୋଳେ ବୋଳିବୁ ।୪। ନିଷ୍ଠାକରି
କାଢ଼ୁ କହୁଛି ତୋତେ । ନିତିପ୍ରତି ଭୋଗ ଭୁଞ୍ଜିବୁ ଯେତେ ।୫

ଚନ୍ଦନ ଫୁଲ ପାନ ଦୁଧସର । ଏଉଜାଣି ଖଦିଥିବି ତୋହର ।୬।
ଘୁଟକୁରେ ବାବୁ ଭୟ ନ କର । ଛତେନ୍ଦ୍ର ହୋଇ ବିଦ୍ୟା ପଢ଼ି-
ବାର ।୭। ଯାହା ଖାଇବୁ ତା ଦ୍ୱିଭାଗ କର । ଯତନେ ଦେବୁ
ଗୁରୁଙ୍କ ସ୍ମୁର । ୮ । ଝଟଝଟ ରାତ୍ରୁ ପଢ଼ିଣ ଯିବୁ । ଖୀନ
ପୀତବାସ ପିନ୍ଧିଣ ଥିବୁ ।୯। ନୀଳାମ୍ବର ଭାଇ ଥିବେ ସଙ୍ଗର ।
ନେଇ ଆଣୁଥିବେ ଭ୍ରାନ୍ତି ନ କର । ୧୦ । ଟଙ୍କା ସୁନା ଲୁଗା
ଧାନ କଉଡ଼ି । ଏତେକ ଗୁରୁଙ୍କୁ ଦେବୁ କର ଯୋଡ଼ି ।୧୧। ଠିକ
ଘୃଡିଗୋଟି ଆଗେ ପଢ଼ିବ । ଠିଆ ହୋଇଲେ ଗୁରୁଙ୍କୁ କହିବ
ଡାକହାକ କରି ପଢ଼ିବ ପାଠ । ଡିଙ୍ଗର ଭୁଲ୍ୟ ନ ଗୃଲିବ
ବାଟ ।୧୩। ବାଳେହେଁ ବାବୁରେ ମୂରୁଖ ନୋହି । ତମପଣ
କଲେ ବିଦ୍ୟା ନ ଯାଇ ।୧୪। ଅଣାମଣିଷରେ ନ ପଢ଼େ ହେତୁ ।
ଅଣପବିତ୍ର ହୁଅଇରେ ସେହୁ ।୧୫। ତିନି ତ୍ରୈଲୋକ୍ୟ ଯେଉଁ
ପ୍ରଭୁ ଥାଇ । ତୁଣ୍ଡେ ଘୃମଡିଲେ ବିଦ୍ୟା ଆସଇ ।୧୬। ଥର୍ବୀର
ବୁଦ୍ଧି ସନ୍ଥଜନ ସଙ୍ଗେ । ଥିଲେ ଜ୍ଞାନ ପାଇ ଗୁରୁଙ୍କ ଆଗେ ।୧୭।
ଦୁଇ ଦୁଇ ନେତ୍ର ସକଳ ଜନ । ଦେଖ ବିଦ୍ୟାବନ୍ତ ତ୍ରୟ-
ଲୋଚନ ।୧୮। ଧର୍ମ ଥିଲା ଲୋକର ଗୃରିଆକ୍ଷି । ଧର୍ମରୁ
ଅଧିକ ଜ୍ଞାନିଙ୍କି ଲେଖି । ୧୯ । ନାନାଦେଶ ଗଲେ ବିଦ୍ୟାକୁ
ପୂଜା । ନ ଜାଣିବା ଲୋକେ ବିଦେଶେ ନ ଲଜ୍ଜା । ୨୦ । ପୁଣ୍ୟ
ଲୋକେ ପୂର୍ଣ୍ଣଦାନ ଦିଅଇ । ପୂର୍ଣ୍ଣଦାନ ଦେଲେ ଅକ୍ଷୟ ହୋଇ ।୨୧
ଫେଡ଼ଇ ପାପଭାର ହୃଦୟର । ଫଳ ଫଳଇ ଅନେକ ପ୍ରକାର ।
ନହନ୍ତି ବିଦ୍ୟା ନୋହେ ଚୋର ଭାର । ବହି ନ ନିଅନ୍ତି ଖଣ୍ଡ
ତସ୍କର । ୨୩ । ଭଲ ଭଲଲୋକେ ଭଲ ବୋଲନ୍ତି । ଭାଇ
ଭଗାରି ବାଣ୍ଟି ନ ନିଅନ୍ତି ।୨୪। ମଉନେ ଥିଲେ ପୃଛିଲେ
କହି । ମନୁଷ୍ୟ ହୋଇ ନ ପଢ଼ଇ ଯେହି । ୨୫ । ସେହୁ ସେ
ନ ପଢ଼େ ପଶୁରେ ଲେଖ । ଜାଣି ହେତୁକର ତୁ ଚନ୍ଦ୍ରମୁଖ ।୨୬

ନାକା ରାଜୁଡ଼ା ସବୁଠାରେ ପୂଜା । ରଣେ ବଣେ ଯାଉ ଯେଣେ ତା ଇଚ୍ଛା ।୨୭। ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷେ ମଲେ । ଲକ୍ଷେ ମାତ୍ରକେ ଗୃହଭିକ୍ଷା କଲେ ।୨୮। ବଡ଼ ସାମରଥ ଯେବଣ ଲୋକ । ବୋଝ ଭାର ବହିଲୋଗ୍ୟ ତା ଦେକ ।୨୯। ଶ୍ରୀବନ୍ତ ଲୋକ ଯେ ବିଦ୍ୟା ପଢ଼ଇ । ଶୁଣି ହସ ହସ ଦେବ କହାଇ ।୩୦ ସୁବର୍ଣ୍ଣ ଥାଳରେ ଅକ୍ଷତ ଦୁବ । ସରୁ ତଣ୍ଡୁଳ ଗୁଡ଼ ନଇବିଦ୍ୟ ।୩୧ ସଞ୍ଜା ନେଇ ମାଏ ସମର୍ପି ଗଲେ । ଶାଦିଦେବି ମୁନି ବିଦ୍ୟା ଦହିଲେ ।୩୨। ହୋଇଣ କୁଶଳ ବିଦ୍ୟା ଶିଖିଲେ । ହରଷେ ଗୁରୁ ବିଦ୍ୟାଦାନ ଦେଲେ ।୩୩। ଛଚନ୍ଦ୍ର କଥାଏ ଶ୍ରୀଭାଗବତ । କ୍ଷମେ ହରିଦାସ ଗାଇଲେ ଗୀତ । ୩୪ ।

---

## ଗଣେଶାଷ୍ଟକ ।

ଢରିମସ୍ତକ କପୋଳେ ଶୋଭେ ଚିତା । ଖଡ଼ଗ ଡମ୍ବରୁ ଶୋଭେ ତ୍ରହ୍ମବେତ୍ତା । ଜ୍ଞାନଗୁରୁ ବୋଲି ଦେବେ ଦେଲେ ବର । ନମୋନମୋ ଗଣନାଥ ବିଦ୍ୟାବର ।୧। ଘଣ୍ଟି ଘର୍ଘରି ଶବଦ ରୁଣଝୁଣ । ନଟ ବିଭଙ୍ଗି ଶୋଭିତ ଦେବଗଣ । ଚତୁର ପଣେ ଅମୃତ ଲଡୁକର । ନମୋ ନମୋ ଗଣନାଥ ବିଦ୍ୟାବର ।୨। ଛବି ବୀରପଣେ ବାମେ ଉଡ଼େ କେତ । ଜଟା କଉଡ଼ୁନୀ ବେଶ ତଣ୍ଡ୍ରୀସୁତ । ଝଟକନ୍ତି ଯେ କୁଣ୍ଡଳ ହୀରାଧାର । ନମୋ ନମୋ ଗଣନାଥ ବିଦ୍ୟାବର । ୩ । ନୃତ୍ୟ ଦେଖିଣ ଦେବତା ଭୋଳ ଗଲେ । ଟଙ୍କଧର ତୋଷେ କରେ ଶୂଳ ଦେଲେ । ଠଣପୁରର ଆକୃତିରୂପ ଢୋର । ନମୋ ନମୋ ଗଣନାଥ ବିଦ୍ୟାବର । ୪ । ଡାକ ଡମ୍ବରୁ ବଜାନ୍ତି ଗିରୀଶ୍ବର । ଢଳି ଢଳି ନୃତ୍ୟ କର ବିଦ୍ୟାବର । ଅଣ ଅରୂପ ସ୍ବରୂପ ଅଟେ ତୋର । ନମୋନମୋ ଗଣନାଥ ବିଦ୍ୟାବର । ୫ ।

ତିନି ଭୁବନେ ଗଣେଶ ଅଗ୍ରେ ପୂଜା । ଥୋଇ ହସ୍ତରେ
ଭଷିଲ ଦେବ ରାଜା । ଦନ୍ତ ଭଗ୍ନ ହସ୍ତୀ ଖଣ୍ଡ କରେ ଢୋର
ନମୋ ନମୋ ଗଣନାଥ ବିଦ୍ୟାଧର । ୬ । ଧନ୍ୟ ଲେଖନ
ପଠନ କେହୁ କହେ । ନୃତ୍ୟ ଗୀତରେ ନାରଦ ସମ ନୋହେ ।
ଯାଠେ ସମ ତୋତେ ନୋହେ ଦେବବର । ନମୋ ନମୋ
ଗଣନାଥ ବିଦ୍ୟାଧର ।୭। ପାଶ ଅଙ୍କୁଶ ତ୍ରିଶୂଳ ଶୋଭେ କର ।
ବାହେ ବାହୁଟି କଙ୍କଣ ହୀରାସାର । ଭଲା ନାମ ଦେଲେ
ମାଏ ଗଣେଶ୍ବର । ନମୋ ନମୋ ଗଣନାଥ ବିଦ୍ୟାଧର । ୮ ।
ପନ୍ନଗ କୁଣ୍ଡଳ ମାଳ ଚୂଳ ଧାରୀ । ଜପ ତ୍ରିଦଶ ଏକାଗ୍ରେ ମୂଳ
କରି । ରଙ୍ଗେ ଇନ୍ଦୁର ପୃଷ୍ଠରେ ବିଜେ ଢୋର । ନମୋ ନମୋ
ଗଣନାଥ ବିଦ୍ୟାଧର । ୯ । ଲିହି କାଟିଏ ପଢ଼ିଲେ ଗଣେ-
ଶ୍ବର । ବେଦବିଦ୍ୟାରେ ଜିଣିଲା ତିନିପୁର । ଦୃଷ୍ଟିମାନେ
ଖଣ୍ଡିଲ ଅନ୍ଧକାର । ନମୋ ନମୋ ଗଣନାଥ ବିଦ୍ୟାଧର । ୧୦
କ୍ଷିରେ ସପ୍ତଶାଖା ଭୁବିର ନ ଦିଶେ । ଶଶୀ ଉଇଁଲା ଜଳଦ
ମେଘ କି ଯେ । ହୃଦେ ପଦକ ରୁଦ୍ରାକ୍ଷମାଳ ଢୋର । ନମୋ
ନମୋ ଗଣନାଥ ବିଦ୍ୟାଧର । ୧୧ । ସ୍ଥୂଳ କଉପୁନୀ ବ୍ୟାସ-
ବେଶ ହୋଇ । ସ୍ଥିର ତ୍ରିଦଶ ମୋହିଲୁ ଦେବ ତୁହି । ସ୍ଥିରମତି
ଦିବାକର ଦୁଃଖହର । ନମୋନମୋ ଗଣନାଥ ବିଦ୍ୟାଧର ।୧୨

---

## ବନ୍ଦଇ ହରି ।

ବନ୍ଦଇ ହରି ଦେବମୁରାରି ଲକ୍ଷ୍ମୀ ଦେବିଙ୍କର କାନ୍ତ ।
ଅଭୟବର ଦ୍ୟନ୍ତୁ କୁମର ସେ ପ୍ରଭୁ ଦେବ ଅନନ୍ତ । ବାର-
ମାସ ମଧ୍ୟେ ଅଟଇ ସାର । ମାଘ ସ୍ନାନକୁ ଯେ ହେଲେ ବାହାର
ମାଘସ୍ନାନକୁ ସେ ବାହାର ହୋଇ । ବସନ୍ତପଞ୍ଚମୀ ନାମ
ବୋଲାଇ । ଏହି ପଞ୍ଚମୀ ଯେ ଅଟଇ ଭଲ । ଆନ ପଞ୍ଚମୀ

ନାହେ ଏହା ଭୁଲ । ପିଢ଼ୁଳା ଲେଖାଇ ବୁଲି ସେ ଯାନ୍ତି । ଶ୍ରୀଫଳ ପୁସ୍ତକ ହସ୍ତେ ଘେନନ୍ତି । ମୋଡ଼ି ମୋଡ଼ିଆ କଣ୍ଠେ ଫୁଲ ବଳା । ଓଁଝାଚାଟଙ୍କର ଉତ୍ସବ ଲୀଳା । ଯାହାକୁ ଆପଣ ଶୋଳନ ଯୋଡ଼ା । ପଢ ହେ ଚାଟେ ହୋଇ ଯୋଡ଼ା ଯୋଡ଼ା । ପିଲାଏ ରହି ବୋଇଲେ ଆମ୍ଭର । ଗୁରୁଙ୍କୁ ଦିଅ ଇଷ୍ଟ ବନ୍ଧୁ ଘର । ଇଷ୍ଟ ବନ୍ଧୁ ଘର ମାଗିଣ ଯାଉଁ । ଯାହା ପାଉଁ ତାହା ଗୁରୁଙ୍କୁ ଦେଉଁ । ଗୁରୁଙ୍କ ନିମନ୍ତେ ଅଇଲୁଁ ଆମ୍ଭେ । ଯୋଗ୍ୟ ଯୋଗ୍ୟ ହୋଇ ନ ଭାଲ ତୁମ୍ଭେ । ତୁମ୍ଭେ ଯେ ଆମ୍ଭର ବନ୍ଧୁ ସୋଦର । ତେଣୁ ଯେ ଅଇଲୁଁ ତୁମ୍ଭରି ଘର । ଅଦିଆ ବନ୍ଧୁର ପାଶେ ନ ଯାଉଁ । ଘରକୁ ଗଲେ ଦରବୁଆ ପାଉଁ । ଘର ଲୋକଙ୍କୁ ସବୁ କହି ପୋଛି । ମନରେ ଆନ ନଧରିବ କିଛି ॥ ଟଙ୍କା ସୁନା ଲୁଗା ଧାନ କଉଡ଼ି । ଯାହା ଦେବ ତାହା ଆଜ, ଆଜ ନ ଦେଲେ, ବାହୁଡ଼ି ଗଲେ, ପଶ୍ଚାନ୍ତେ ପାଇବ ଲାଜ । ସାହୁ ନୋହୁ ଆମ୍ଭେ ନୋହୁ ଖାତକ । ଯାହା ଦେବେ ତାହା ଦେଖିବେ ଲୋକ । ବରଷକେ ଥରେ ଆମ୍ଭ ମାଗୁଣୀ । ଭଲ ଭିଆଇଲେ ଶାରଙ୍ଗ ପାଣି । ଶ୍ରୀନୀଳଗିରି ଶିଖରେ ହରି ତୁମ୍ଭଙ୍କୁ ଦିଅନ୍ତୁ ବର । ତୁମ୍ଭେ ଯେ ଆମ୍ଭଙ୍କୁ ପ୍ରସନ୍ନ ହେଲେ ଓଝା ଚାଟେ ଯିବୁଁ ଘର । ପଢ଼ି ପଢ଼ି କରି ଲାଗିଲା ଭୋକ । ତୁମ୍ଭେ କି ନ ଜାଣ ପଢ଼ିବା ଦୁଃଖ । ଆସ୍ତି ନାସ୍ତି କେବେ ଦେବ କହ । ବେଗେ ଚଳିଯିବୁଁ ମେଲାଣି ଦିଅ । ମେଲାଣି ଦେଲେ ଯିବୁଁ ଆମ୍ଭ ବାସ । ଭାବେ ଭଣିଲେ ବଳରାମ ଦାସ ॥



## ଚାଟଶାଳି ବୋଲି ।

କହୁ ଛନ୍ତି କୃଷ୍ଣଚନ୍ଦ୍ର ମାତାଙ୍କ ଆଗର । କେ କହିପାରିବ ଚାଟଶାଳିର ବ୍ୟଭାର । ଖଡ଼ିଗୁଆ ବାଲଗୁଆ ମାତ୍ରାଗୁଆ ମାନ ।

କ୍ଷଣକେ ଭିତରେ ଗୁଆ ଦିଅଗୋ ବହନ ।। ଗୋବିନ୍ଦେ ବୋଇଲେ
ମାଗୋ ବହୁତ ଯେ ଶାସ୍ତି । ଗୋଡ଼ବ୍ୟଥା କଲେ ଛିଡ଼ା କରି ନ
ଦିଅନ୍ତି ।। ଘରୁ ଯେତେବେଳେ ମାଗୋ ଯାଉଁ ପାଠଚଢ଼ି ।
ଘଡ଼ିଏ ଉଛୁର ହେଲେ ଖାଉଁ ବେତବାଡ଼ି । ନାୟକଙ୍କ ସମ୍ମୁରେ
ଯେ ଉଭାକରାବନ୍ତି । ନାକର ଲ କାଟିଣ ଯେ ଲୁଆକୁଁ ଦିଅନ୍ତି ।।
ତରତମେ ଦିଅନ୍ତି ମାଗୋ ମଢୁଆ ଶାଙ୍କୋଲି । ପ୍ରହର ଖଣ୍ଡ ପ୍ରାୟ
କରି ଯେତେ ମାଡ଼ ମାରି ।। ଛନ ଛନ ମନ ମାଗୋ ହୁଅଇ ବିକଳ
ଘୁଣ୍ଟିକ ପିଟିଣ ଧରାବନ୍ତି ନାକ ବାଳ ।। ଜଗନ୍ନାଥ କହୁଛନ୍ତି
ମାତାଙ୍କ ଅଗର । ଯମଦ୍ୱାର ଅଟେ ମାଗୋ ଚାଟଶାଳିଘର ।।
ଝର ଝର ନୟନରୁ ବହୁଥଇ ନୀର । କ୍ଷୀଣ ପଡ଼ନି ଶରୀରେ
ଡିମ୍ଭି ଜରଜର । ନୀଳାମ୍ବର ଭାଇକି ଯେ ସଙ୍ଗତରେ ନେନି ।
ନିଶ୍ଚି ଦେନି ଘଡ଼ି ଥାଉଁ ମାଉଁ ଭାଇ ବେନି ।। ଟିକିଏ ଉଛୁର
ମାଗୋ ହୁଏ ଯେଉଁ ଦିନ । ତାହି ଖତ କହୁ ଥାନ୍ତି ଚାଟପୁଅମାନ
ଟିଆ ହୋଇବାକୁ ମାଗୋ ଉଭା ଯେ ବୋଲନ୍ତି । ଠେକା ଯେ
ମସ୍ତକେ ଥିଲେ ଗୁଆନ୍ତେ ଧରନ୍ତି ।। ଡରେ ଥରହର ମାଗୋ
କମ୍ପୁଥାଇ କାୟେ । ତାକୁ ନ ଦେଖିଲେ ବେତ ବାଜଇ
ଯୋଡ଼ାଏ ।। ତାଲେ ହୋ ଅବସ୍ଥା ମାଗୋ ପଠେଢ଼ି ବର ।
ଢଳଢଳ ନୟନରୁ ବହୁଥଇ ନୀର ।। ଆଣ୍ଠୁ ଗଣ୍ଠି ଧରେ
ମାଗୋ ବହୁଥଇ ଝାଳ । ଆମ୍ଭେ ଯେ ବିକଳ ମାଗୋ ଆମ୍ଭରି
ଶରୀର ।। ତିରିଶ ଦିନରେ ଅଷ୍ଟଦିନ ନାହିଁ ପାଠ । ତେବେ ଯେ
ଗୁରୁ ଆମ୍ଭଙ୍କୁ କରନ୍ତି ଆକଟ ।। ଥିଲା ବେଳେ ଚାଟ ଘରେ ଭଲ
ହୋଇ ଥାଇ । ଥିଲା ଚାଟ ନ ଥିଲାକୁ ଟେର ଯେ କହଇ ।
ଦୁଇଓଳି ଧାରଣା ଗୋ ଅଛି ତହିଁ ଭଲେ । ଦୁଇବେତ ବାଜଇ
ଯେ ବାଡ଼ି ଘର ଗଲେ ।। ଧୂଳିରେଣ ଭଡ଼ା ମାଗୋ ନ ଥିଲେ
କଦୟ ଲେ । ଧରି ଚାଟ ପୁଏ ଗୁଆ ନେଉଥାନ୍ତି ଭଲେ ।। ନ ରା-

ପ୍ରଣକହୁଛନ୍ତି ମାତାଙ୍କ ଆଗର । ନାନା ପରକାରେ ଗୃହ ଶାଳିର ବେଭାର । ପନ୍ଦର ଦିନରେ ମାଗୋ ପ୍ରଦୀପ ପଢ଼ଇ । ପୋଥି ଧେନି ସବୁ ଗୃହେ ଭିକ୍ଷା ମାଗୁଁ ଯାଇଁ । ଫେରିଫେରି ଦ୍ୱାରେ ମାଗୋ ଯାହା ପାଇ ଥାଉଁ । ଫୁରୁଣା ହୋଇଣ ତାହା ଗୁରୁ ପାଶେ ଦେଉଁ ॥ ବୁଲି ବୁଲି ମନ ମାଗୋ କହୁଛ ଉଷତ । ବନ୍ଧଘରୁ ଫେଡ଼ିଥାଉଁ ସେହି ଦିନ ମାତ୍ର ॥ ଭାତଖାଇ ଅଇଲୁଁ ଗୋ ହୋଇଲା ଉତ୍ତର । ଭସ୍ମତ ପଶିଲା ଅସ୍ଥି ଆମ୍ଭର ଶରୀର ॥ ମାୟାଧର ବଚନେ ଯେ ମାଏ କହୁଛନ୍ତି ॥ ମନେ ଭ୍ରାନ୍ତି ନକରିବୁ ବାବୁ ଶିରିପତି । ଯଦୁକୁଳ ଚନ୍ଦ୍ର ବାବୁ ହୋଇ ବୁରେ ତୁହି । ଯତ୍ନକରି ବିଦ୍ୟା ପଢ଼ ଦୁଇ ଗୋଟିଭାଇ ॥ ରାଜା ହୋଇବୁରେ ବାବୁ । ମଥୁରା ରାଜ୍ୟେଣ । ରାଜସଭା ମଧ୍ୟରେ ବସିବୁ ନାରାୟଣ ॥ ଲାଜ ନ କରିବୁ ବାବୁ ପାଠ ପଢ଼ି ବାର । ଲଦ୍ଧ ଯେ ଗୁରୁଙ୍କୁ ମାନ୍ୟ କରିଥିବୁ ଭଲ ॥ ବଳରାମ କହୁଛନ୍ତି ମାତାଙ୍କର ଆଗେ । ବେଳତ ଉଚ୍ଛୁର ହେଲା ଗୁରୁ ଆସ ବେଗେ ॥ ଶୁଣିଣ ସାନନ୍ଦ ଯେ ହୋଇଲେ ଦଇବକୀ । ସଙ୍ଗେ ପୁତ୍ର ଘେନି ଗଲେ ଗୃହ ଯେ ଶାଳିକ । ଶନିବାର ଗଣ୍ଡାଏ ଗୈନ୍ଦଠି ବୋଡ଼ିମାନ । ସବୁ ନେଇ ସମର୍ପିଲେ ଗୁରୁଙ୍କ ଆଗେଣ ॥ ସାତଦିନ ସାତରାତ୍ର ପଢ଼ିଲେ ମୁରାରି । ସବୁପାଠ ପଢ଼ିଲେ ଉଷ୍ଟେୟାଷ୍ଟ କରି । ହରଷ ହୋଇଣ ଯେ ପଢ଼ାନ୍ତି ବିଦ୍ୟା ଗୁରୁ । ହରଷେଣ ପୁତ ନେଇ ଦେଲେ ଘମଯୁରୁ ॥ ସୁଛନ୍ଦେଣ ଶ୍ରୀହରି ଦ୍ୱାରକା ପୁର ଗଲେ । ଷଣେ ବଳରାମ ଦାସ ଗୀତରେ ଭଣିଲେ । ୩୪ ।

ସମ୍ପୂର୍ଣ୍ଣ ।

